# କୃପାଭିକ୍ଷା ଚଉତିଶା

ଲେଖିକା—

ଶ୍ରୀମତୀ ନିଶାମଣି ଦେବୀ



ପ୍ରକାଶକ

ଶ୍ରୀ ସାଧୁଚରଣ ମହାନ୍ତି

(ପ୍ରଥମ ମୁଦ୍ରଣ)

ମୂଲ୍ୟ ୦ ° /　　ଏକଅଣା ମାତ୍ର ।

# ଭକ୍ତି



ଲେଖିକା ମୋର ନିଅବୋଜ—ସ୍ନେହାଚନ ଅସ୍ମମାନଙ୍କର ପାରିବାରିକ ଅଘଟନଘଟନରେ ଅସ୍ମମାନଙ୍କଠାରୁ ଦୂରରେ। ମୋର କିନ୍ତୁ ଜଗତରେ ପର କିମ୍—ଏପରି ଅନେକଟା ବାସନା ଅନ୍ୟଥା ଥିଲେ ସୁଦ୍ଧା ମୁଁ ପରିବାରରେ ନଗଣ୍ୟ। ତାଙ୍କର ଏତିକି ନ୍ମି କରି ପାରି ନିଜକୁ କୃତାର୍ଥ ମନେ କଲି।

ଅତି ଲେଖା—ଏ ବିଷୟରେ ଯୋଗ୍ୟତର ବ୍ୟକ୍ତି ଲେଖିଥିଲେ ଭଲ ହୋଇଥାନ୍ତା—କିନ୍ତୁ ମୋର କ୍ଷୁଦ୍ର ମତରେ ଅଧୁନିକ [illegible] କୌଣସି ନାରୀ ଲେଖିକାଙ୍କ ତଳେ ଏହାଙ୍କ ଆସନ ଦେବାକୁ ମୁଁ ନାରାଜ। ପାଠକେ ଏହା ବିଚାର କର।

ଭୋଠବାଡ଼ } ସାଧୁଚରଣ ମହାନ୍ତି
୧୨ । ୯ । ୩୨ } ପ୍ରକାଶକ

# ସ୍ମୃତି

ମୋର ଜୀବନର ମଧ୍ୟାହ୍ନ ଶେଷ ପ୍ରାୟ । ବଟ ଥିଲା ମୋର କଳ୍ପବଟ । ତାଙ୍କୁ ହରାଇ ମୋର ସମସ୍ତ ସୁଖ ଦୂର ହୋଇଛି । ଆଜି ପ୍ରଭୁଙ୍କ ପଦାରବିନ୍ଦରେ ଆତ୍ମସମର୍ପଣ କରି, ତାଙ୍କ ନିକଟରେ ଏକାନ୍ତ ପ୍ରାର୍ଥନା ମୋର, ତା'ର ସ୍ୱର୍ଗତଃ ସ୍ୱଚ୍ଛ ଅନାବିଲ ଆତ୍ମା ଶାନ୍ତିରେ ରହୁ ।

ତା'ର ସ୍ମୃତି ନିମିତ୍ତ ଏହା ଉତ୍ସର୍ଗ କଲି ।

କୋଠବାଡ଼ି
୧୨ । ୯ । ୩୨

ତା'ର
ଅଭାଗିନୀ
ଭୋଜ

ନିଜକଥା—

ଜୀବନ ଯେତେବେଳେ କର୍ଣ୍ଣଧାରସ୍ଥ ଥିଲା ସେତେବେଳେ ମୋର ଲେଖିବାର ବାସନା ଅତି ବେଶୀ ଥିଲା । କିନ୍ତୁ କୁଳୀନ କୁଳମାନଙ୍କ ପରି ମୋର ସେ ବାସନାଟିକ କ୍ରମେ କ୍ରମବିକାଶ ନ ପାଇ ଆସି ମରିବା ଉପରେ । ତା'ର ସହାଯ୍ୟ ମୁଁ କୁଆପି ପାଇ ନ ଥିଲି ।

ଦୈବାତ୍ ଶ୍ରୀମାନ୍ ସାଧୁଚରଣଙ୍କ ସହିତ ଦେଖା ଏବଂ ଏ ପ୍ରସଙ୍ଗ ଉତ୍ଥାପନ । ମୋର ନଗଣ୍ୟ ଲେଖା ପ୍ରତି ସେ ଯେ ଅନୁରକ୍ତ ହେଲେ କାହିଁକି ମୁଁ ଜାଣେ ନାହିଁ । ସେ ସ୍ୱତଃପ୍ରବୃତ୍ତ ହୋଇ ଏହାର ପ୍ରକାଶକ ହେଲେ, ମୁଁ ମଧ୍ୟ ଏହା ତାଙ୍କୁ ଦେଲି । ଏଥି ପାଇଁ ମୁଁ ତାଙ୍କୁ ଆଶୀର୍ବାଦ କରୁଛି; ଅତି ମଧ୍ୟ କୃତଜ୍ଞ ରହିଲି ତାଙ୍କଠାରେ ।

ଅତଃପରେ—ମୋର ଗୁରୁଦେବ ଇହ ଜଗତରେ ନାହାନ୍ତି— ସେ ଏ ଅଭାଗିନୀକୁ ଏ ଦିଗରେ ଯଥେଷ୍ଟ ଉତ୍ସାହିତ କରିଥିଲେ; ତେଣୁ ତାଙ୍କଠାରେ ଋଣୀ ରହିଛି ।

ଲେଖିକା—



# କୃପାଭିକ୍ଷା ଚଉତିଶା

କ

କରୁଣା ଭଣ୍ଡାର ଥିଲ ପୂର ।

କାଏ ଢେଳାଗଲ ଜୁର ଦର ।

ଦର୍ମ ଅବଳକୁ ନ ପାଇଲ ସେ ତ ଅଷ୍ଟମ ଦେମନ୍ତେ ଗଲ ସର,

**ଅହେ ବଂଶୀଧାର !**

ଦଂଶି ଦେଲାଣି ଏ ତାପ ସର୍ପପର ।୧।

ଖ

ଖୋଜୁ ନାହିଁ ଧନ ସୁଖ ଘର,

ଯୀର ସ୍ତବଲେ ସେ ଶଷ ମୋର ।

ଖୋଜୁଅଛୁ ପ୍ରଭୁ ପଙ୍କଜ-ପଯୁର ଦେଇ ଏ ହୃଦେ ଶୀତଳ କର

**ଅହେ ଚକ୍ରଧର !**

ଜଳଅଛୁ ବହ୍ନି ଅତି ପରଖର ।୨।

ଗ

ଗୃହେ ଏ ଦୁର୍ଦ୍ଦିନ ଥିଲ ବସି,
ଗଲ ମୋ ସୁଖ ସରବ ଶୋଷି ।
ଗରଳକୁ ମଣି ଅମୃତ ;ପରଏ ଭ୍ରାନ୍ତ ହେଉଅଛୁ ଧାବା କରେ;
ଅହେ ବ୍ରହ୍ମହରଣି !
ତୁମ୍ଭ କୃପାରେ ସୁପଥ ଯିବ ଜାଣି । ୩ ।



ଘ

ଘର ହେଲ ମୋର ଘୋର ବନ;
ଘଟେ ଅଛୁ ଜୀବ-ହତ ଜ୍ଞାନ ।
ଘେନଲ ନାହିଁତ ହିତ ଉପଦେଶ ମାୟା ମୋହ ସୁଦ୍ଧେ ସେ ବନ୍ଧନ;
ଅହେ ଭଗବାନ !
ତୁମ୍ଭ କର ଶସ୍ତ୍ରେ କି ନୋହିବ ଛେଦନ । ୪ ।



ଙ

ଅଦ୍ଭୁତ ନାହିଁ ହୋଇଲ ଭ୍ରମ,
ଅଂଶୁ ନାହିଁ ଭଣେ ତୁମ୍ଭ ନାମ ।
ଅର୍ଜି ଥୋଇଥିଲ ଏତ୍ତେ ପାପକର୍ମ ଦୁଃସହ ଦୁଃଖେ ଦହୁଛି ମର୍ମ,
ଅହେ ଘନଶ୍ୟାମ !
ଦେହ ଜାତରେ ହେଲଣି ଶିଳା ସମ । ୫ ।



ଚ

ଚଲୁ ନାହିଁ ମୋର ପାଦପାଣି,
ଚରଣ ସ୍ମରଣ ଭୁଲିଲେଣି ।
ଚଣ୍ଡାଳ ଦୁର୍ଗନ୍ଧ ଦେହ କି କୁମତ ନ ଜାଣିଲ ଅହ୍ଲଭ ପୁଣି,
ଅହେ ଚିନ୍ତାମଣି !
ଚକ୍ଷୁ ଥାଉଁ ଅନ୍ଧ ହୋଇ ବସିଲେଣି । ୬ ।



ଛ

ଛିଣ୍ଡାଇ ଦିଅ ଏ ମୋହ ପାଶ,
ଛନ୍ଦା ଚରଣରେ ରଖୁ ଆଶ ।
ଛଡ଼ିଯାଉ ମୋର ଘୋର ଅନ୍ଧକାର ଦିବ୍ୟ ଚକ୍ଷୁ ଦିଅ ହେଉ ଦୃଶ୍ୟ,
ଅହେ ପୀତବାସ !
ଶାନ୍ତି ଦିଅ ଚିତ୍ତୁ ନାଶି ଅସନ୍ତୋଷ । ୭ ।



ଜ

ଯନ୍ତ୍ରଣା ହୋଇଲା ଗରୁ ଝାଁଣ ,
ଜନ୍ମୁପଡ ଦଣ୍ଡ ଏ ପ୍ରମାଣ ।
ଜଣାଇବ କିସ ଅନ୍ତର୍ଯ୍ୟାମୀ ନାଥ ଅନ୍ତର୍ଗତ ଦୁଃଖ କି ନ ଜାଣ ?
ଅହେ ନାରାୟଣ !
ନାମ ଧଇଲେ ଦୁସ୍ତରୁ ପରିତ୍ରାଣ । ୮ ।



ଝ

ଝାଡ଼ ଅରଣ୍ୟ ଏ ଘୋରତମ,
ଝୁଣ୍ଟି ପଡ଼ିଲି ମୁଁ ପାଇ ଶ୍ରମ ।
ଝଟତ ମୋ ହୃଦ ଆକାଶେ ଶରାକ ଉଜ୍ଜ୍ୱଳକର ପୂର୍ଣ୍ଣେନ୍ଦୁ ସମ,
ଅହେ ରାଧାଶ୍ୟାମ !
ଏହୁ ଯୁଗଳ ଚରଣ କଳ୍ପଦ୍ରୁମ । ୯ ।



ଞ

ନିଷ୍ଠୁର ଅସହ୍ୟ ଦୁଃଖ ଅତି,
ନୋହିଲ ବନ୍ଧୁର ମୋର ପ୍ରତି ।
ନାମ ବହୁଅଛ କୃପାସିନ୍ଧୁ ପରି ନେତ୍ର ଜଳେ ବକ୍ଷ ଯାଏ ଭିଜି;
ଅହେ ରମାପତି !
କେଉଁ ଦୋଷକୁ ଲଭିଲି ଏଡ଼େ ଶାସ୍ତି । ୧୦ ।



ଟ

ଟେକି ସୁଧା କ୍ଷୁଧାବେଳେ ଦେଲ,
ଠାକୁ ଅଛି ଆଶା ଜାଣିଥିଲି ।
ଟୋପାକ ପାଇଁ କି କର ପ୍ରସାରିଛି ଛଡ଼ାଇ ଗରଳ ପରଷିଲ;
ଅହେ ଅଦମୂଳ !
ଦୃଷ୍ଟି ପଥରେ ଥୋଇ ତା ହରିନେଲ । ୧୧ ।





ଠାବ ଏ ଜୀବକୁ ମିଲ ନାହିଁ,

ଠକ ଦେଲ ପ୍ରଭୁ କାହିଁପାଇଁ ?

ଟିକେ ଅମଙ୍ଗଳ ନାଶେ ତୁମ୍ଭ ନାମ ଶନ୍ତ୍ରଣ ଅଭନ୍ତା ଥିଲ ହୋଇ;

ଅହେ ଭବଗ୍ରାହୀ !

ଜନ୍ମ ପାଇଲି ତ ପୁଣ୍ୟ ଅର୍ଜି ନାହିଁ । ୧୨ ।



ଡ

ଡାକ ଭକ୍ତଅଛ ଗୌରହରି,

ଡୁବି ଯିବ ପାପ ନାମ ଧରି ।

ଡେରି କ୍ରିତ ପଥ ନାମ ସଙ୍କୀର୍ତ୍ତନେ କେ କେତେ ଅଧମ ଗଲେ ତରି ।

ଅହେ ଗୌରହରି !

ଯୁଗ ଧର୍ମ ଏ ଅଛ ପ୍ରଚାର କରି । ୧୩ ।



ଢ

ଢାଳେ ଭକ୍ତଗଣେ ହୋଇ ତୋଷ,

ଢୋକ ଜିଦ୍‌ଗାରଲେ ନାମ ରସ ।

ଢାଲ ବାଦ୍ୟ ଗଲ ବ୍ରହ୍ମାଣ୍ଡ ଭେଦିଲ ପତିତ ତାରି ରହିଛ ଯଶ,

ଅହେ ଶଚୀବାସ !

ତୁମ୍ଭ କୃପା ବଳେ ନୋହି ପାରେ କସ । ୧୪ ।



ଣ

ଅନାଥୀ ସଂସାରେ ଦେହ ଧରି,
ଆପଦ ସମ୍ପଦ ଅଛି ଘେରି ।
ଏବେ କାହିଁପାଇଁ ମୋ ହୃଦ ମନ୍ଦିରେ ଶଙ୍କାରି କରନ୍ତ ଦେଲ ଭରି;
ହେ ଦାଇଛାରି !
କରନ୍ତୁ ହୃଅ ଧୀର ଧୀର କରି । ୧୫ ।



ତ

ତଳେ ନ ଘନ୍ଧିଲ ମନୋରଥୀଆ,
ତେଣୁ ଜଣାଉଛି ଏତୁ କଥା ।
ତବନ୍ତ କେମନ୍ତେ ଏ ଘୋର ସଙ୍କଟୁ ଜାଳି ଦେଉଅଛୁ ଶନ୍ତା ଗଥା;
ଅହେ ଜଗତ୍କର୍ତ୍ତା !
ତୁମ୍ଭେ ଅଟ ସିନା ଏ ଜୀବନ ଦାତା । ୧୬ ।



ଥ

ଥିର ନାରେ ବୁଡ଼ିଗଲା ତସା,
ଅସ୍ତୁ ନୁହେ ମତ ତା ଭରସା ।
ଥୋଇ ଏ ହୃଦୟାସନେ ପଦ୍ମପାଦ ସେ ଭଗସ୍ତୁ ସୁଖ ନ ସୁଖବ;
ଅହେ ନରବର !
ଏତୁ ଅନୁଗ୍ରହ ଅଛି ଅନୁସର । ୧୭ ।



ଦ

ଦୁର୍ଲ୍ଲଭ ମନୁଷ୍ୟ ଜନ୍ମ ପାଇ,
ଦଗଧ ପ୍ରାଣେ ଶୀତଳ ନାହିଁ ।
ଦୟାମୟ ଦାନସର ଦିଅ ଦାଅ ଏ ଶୋକ ସନ୍ତାପ ନିବର୍ତ୍ତାଇ;
ଅହେ ଲକ୍ଷ୍ମୀପାଇଁ !
ଜାଣ କଣ୍ଠାଗ୍ରତ ପ୍ରାଣ ଅଛୁ ହୋଇ । ୧୮ ।



ଧ

ଧଇର୍ଯ୍ୟ ସମ୍ଭାଳ ନଗୁବଳ,
ଧାଇ ନାମ ଧନ ହିବ ଭୁଲ ।
ଧଇଲେ ନାମ ତ ଏ କି ଅଚମ୍ଭିତ ଦ'ଗୁଣେ ଏ ପ୍ରାଣ ଜଳେ ଜଳ;
ଅହେ ବନମାଳ !
ଦୁଃଖ ଘ୍ଟର ଦେଲ ବେଢ଼େ ମହା ବଳୀ । ୧୯ ।



ନ

ନ ଜାଣଇ ଏ କି ପରାଭବ,
ନ ଯାଇ କହା ରହୁଛୁ ଜୀବ ।
ନାହିଁ ଲଭ ହାଣ ସ୍ବର୍ଗ ନର୍କ ବେଳ ଯହୁଁ ଛହିଁ ପ୍ରଭୁ ଠାବ ଦେବ;
ଅହେ ପଦ୍ମନାଭ !
ଏ ତ ତୁମ୍ଭର ସର୍ଜନା ଅଟେ ସର୍ବ । ୨୦ ।



ପ

ପ୍ରପଞ୍ଚ ପ୍ରକୃତ ସ୍ଥିର ନୋହେ,
ପବନହୁଁ ଗତି ବେଗ ବହେ ।
ପ୍ରଭୁ ନ ଅଗାଧ ସଂସାର ବାରିଧି ବିନା-ନାବେ କେହୁ ପାର ହୁଏ ?
ଅହେ ଦେବରାୟେ !
ମୋର ଦୁର୍ବୁଦ୍ଧିକୁ ଅଛୁ କି ଉପାୟେ । ୨୧ ।



ଫ

ଫିଟିଗଲା ମନ ଧନ ଫାନ୍ଦ,
ଫିଟୁ ନାହିଁ ମୋହ ମାୟାଛନ୍ଦ ।
ଫେରିବ କି ମନ ହେବ ସଦାଜ୍ଞାନ ନିରତେ ଚିନ୍ତି ପଦାରବିନ୍ଦ ?
ଅହେ ଅଦ୍ଧକନ୍ଦ !
କାହିଁ ହରିନେଲ ମୋର ସୁଖାନନ୍ଦ । ୨୨ ।



ବ

ବଟବୃକ୍ଷ ମୂଳ ତଳେ ବାସ,
ବଞ୍ଚିଥାନ୍ତି କରି ଅହ୍ଲା ତୋଷ ।
ବଗୁବଳ ନାହିଁ ଦେଲ ଟିକି ଉପାଡ଼ି ଅଦାତ୍ୟ କିରଣେ ହୁଏ ଧ୍ୱଂସ;
ଅହେ ହୃଷୀକେଶ !
ଏହା ନୁହଇ କି ପୁଣି ଭ୍ରମ ଦୋଷ ? ୨୩ ।



ଭ

ଭକ୍ତଙ୍କୁ କରୁଣା ଥାଅ କର,
ଭରସା ତ ତୁମ୍ଭେ ସବୁଙ୍କର ।
ଭଣିଛନ୍ତି ଋଷି ସର୍ବ ଘଟେ ବାସ ସ୍ଥାବର ଜଙ୍ଗମେ ଅଛ ପୂର,
ଅହେ ଗିରିଧାରୀ !
କାହିଁ ବ୍ରହ୍ମ ପରଯନ୍ତେ ଅଛ ପୂର ।  ୪ ।



ମ

ମନ ମୋ ନିର୍ବୋଧ ନୁହେ ବୋଧ,
ମୁଁ ଅବା କରୁଛି ଅପରାଧ ।
ମନା କରିବାକୁ ନାହିଁ ତୁମ୍ଭ ବଳ ନିଶ୍ଚୟ ଖଣ୍ଡିବ ଏ ବିପଦ,
ଅହେ ଚକ୍ରାୟୁଧ !
ରହୁଅଛି ତ ତୁମ୍ଭର ବଶ ମଧ୍ୟ ।  ୨୫ ।



ଯ

ଜଗତକରତା ଏକେଶ୍ୱର,
ଜଗତ୍ଜନ ପିତା ମୂଳାଧାର ।
ଜୀବନେ ମରଣେ ଏ ଜୀବ କାରଣେ ଅନ୍ୟ କାହିଁ ଅଛି ପ୍ରତିକାର ?
ଅହେ ଗଦାଧର !
ଦୋଷୀ ହେଲେହେଁ ଡାକୁଛି ବାର ବାର ।  ୨୬ ।



ର

ରଙ୍କ ବନ୍ଧୁ ହସଇଲ ପରି,
ରତ୍ନ ନାହିଁ ଧୂଳି ଥିଲୁ ଧରି ।
ବୀଜ ନୁହେ ମନ ଯେଉଁ ଉପଯୁରେ ସଂସାର ବେଭାର ଗଲା ସରି,
ଅହେ ମଧୁହାରି !
ଦୁଃଖିନୀର ଦିନ ହେଲା ଯୁଗ ସରି । ୨୭ ।



ଲ

ଲୋଭ କଲେ ଲାଭ ନାହିଁ କିଛି,
ଲୁବ୍ଧକ-ବଚନେ ପଡ଼ିଅଛି ।
ଲାଳସାରେ ଧରି ଅଛି ସେ ଭକ୍ଷିବ ମୋହର କର୍ତ୍ତବ୍ୟ ନାହିଁ କିଛି;
ଅହେ ନନ୍ଦବତ୍ସ !
ଭୟେ ଅଭୟପଞ୍ଜର ସୁମରୁଛି । ୨୮ ।



ବ

ବାତୁଳ ପରାୟେ ହେଲା ବୁଦ୍ଧି,
ଶପକୁ ରଖିଛୁ ମୁଁ ସମାଧି ।
ବେନ୍ଧି ବେଳ ତନୁ ଜାଲି ଦେଇଅଛି ଏହାକୁ ତ ସମ ନୋହେ ବ୍ୟାଧି,
ଅହେ କୃପାନିଧି !
ତୁମ୍ଭ ମହିମା ତାହାକୁ ମହୌଷଧି । ୨୯ ।



ଶ

ସରିଗଲା କେଣେ ସବୁ ସୁଖ,
ସଂସାରେ ହୋଇଲି ମୁଁ ବିମୁଖ ।
ସାର ନର ଦେହ ଦେବତା ବାଞ୍ଛିତ ମୋହ ଭ୍ରମରୁ ଏ ହେଲା ଧୂଳ,
ଅହେ ପଦ୍ମମୁଖ !
ଆଜ ଏ ଦୁଃଖକୁ ନାହିଁ ଉପଲକ୍ଷ । ୩୦ ।



ଷ

ସାର ଦେଉଅଛି ଅନ୍ତର୍ଦାହା,
ଶୁଭୁନାହିଁ କି କହୁଛି ଯାହା ।
ସୃଷ୍ଟିଆର ଶଷ ବୃଷ୍ଟି ମୋ ଦୃଷ୍ଟିକି ଏତେବେଳେ କେ ହୋଇବ ସାହା,
ଅହେ ଚକ୍ରବାହା !
ଜଳଧର୍ତ୍ତା ବିନୁ କେ ବୋଲିବ ଆହା ? ୩୧ ।



ସ

ସହୁ ନୋହେ ଆଜ ଏ କଷଣ,
ସ୍ୱଚ୍ଛେ କୃପା କର ବିତରଣ ।
ଶରଣ-ବତ୍ସଳ ପ୍ରସନ୍ନ ବଦନେ ସାନ୍ତ୍ୱନା ଦେଇ ରଖ ଏ ପ୍ରାଣ,
ଅହେ ଅର୍ତ୍ତତ୍ରାଣ !
ଅଶା-ସ୍ରୋତେ ଜୀବ କରେ ସନ୍ତରଣ । ୩୨ ।



ହ

ହୃଦେ ବହୁଅଛୁ ଅହୁ ହାର,

ହର ! ହର ନେଇ କଷ୍ଟଘୋର ।

ହରି ନାମ ହାର ଦିଅ ମୋ ହୃଦର ଅଭାଗିନୀ ମୋତେ ଅଗୋଚର,

ଅହେ ବିଶ୍ୱମ୍ଭର !

ପାପୀ ତାରଣେ ତ ନାହିଁ ପରାପର । ୩୩ ।



କ୍ଷ

କ୍ଷମା ମାଗୁଅଛୁ ଅବିରତ,

ଖଣ୍ଡିବାକୁ ମୋର ଏ ଦୁଷ୍କୃତ ।

ରମାନାଥ ପଦେ କରଇ ଦଇନୀ ପ୍ରଣିପଣ ନୋହୁ ବିପରୀତ,

ଅହେ ଗୋପୀନାଥ !

ଅର୍ପି ଅଛୁ ପଦେ କାଶୀମଣୀ ଚିତ୍ତ । ୩୪ ।



---

କଟକ ପଞ୍ଚପ୍ରେସରେ ଶ୍ରୀ ହରମୋହନ ଚଉଳ ଦ୍ୱାରା ମେସିନ୍‌ଯନ୍ତ୍ରେ ମୁଦ୍ରିତ—୧୯୩୨